ISSN: 2456-9194, Vol. III, Issue. IV, March 2020




ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php



# ଉତ୍ତର ଓଡିଶାର ବାଥୁଡି ସଂପ୍ରଦାୟ ଓ ଚାଙ୍ଗୁଗୀତ

**ଡକ୍ଟର ରାଜା କୁମାର ନାଏକ**

ବିଭାଗ ମୁଖ୍ୟ, ଓଡିଆ ଭାଷା ଓ ସାହିତ୍ୟ ବିଭାଗ, ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ

E-mail: rajakumar.naik@gmail.com

**ସାରମର୍ମ:** ଉତ୍ତର ଓଡ଼ିଶାର ମୁଖ୍ୟତଃ ମୟୂରଭଂଜ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲାର ନୀଳଗିରି ଅଂଚଳରେ ବାଥୁଡି ସଂପ୍ରଦାୟର ଲୋକମାନେ ବସବାସ କରନ୍ତି । ବାଥୁଡି ସଂପ୍ରଦାୟର ଲୋକମାନେ ବାରମାସରେ ତେର ପର୍ବ ପାଳନ କରନ୍ତି । ଏତତ୍ ବ୍ୟତୀତ ଗ୍ରାମର ରୀତିନୀତି ଅନୁଯାୟୀ ଅନ୍ୟାନ୍ୟ ପୂଜାପଦ୍ଧତି ମଧ୍ୟ ପାଳନ କରିଥାନ୍ତି । ବିଭିନ୍ନ ପୂଜାପଦ୍ଧତି ଓ ପର୍ବ ପର୍ବାଣୀରେ ବାଥୁଡି ସଂପ୍ରଦାୟର ଲୋକମାନେ ଭିନ୍ନ ଭିନ୍ନ ଗୀତବୋଲିଥାନ୍ତି, ସେଥିମଧ୍ୟରୁ ଚାଙ୍ଗୁଗୀତ ଅନ୍ୟତମ । ଚାଙ୍ଗୁଗୀତ ପ୍ରତ୍ୟେକ ଶନିବାର ଦିନ ବଡାମଶାଳରେ ବାଥୁଡି ସଂପ୍ରଦାୟର ଲୋକମାନେ ଚାଙ୍ଗୁବାଜାଇ ଗାନ କରିଥାନ୍ତି । କେବଳ ଶନିବାର ଦିନ ବାଥୁଡି ସଂପ୍ରଦାୟର ଲୋକମାନେ ଚାଙ୍ଗୁଗୀତ ଗାଇଥାନ୍ତି ତାହ ନୁହେଁ । ଚଇତ ମାସ ଅଠର ଦିନରେ ଶିମିଳିପାଳ ଘଂଚ ଅରଣ୍ୟ ମଧ୍ୟରେ ଥିବା ଅଠର ଦେଉଳରେ ପାଂଚ ଦିନ ଧରି ବଡାମ ଠାକୁରଙ୍କୁ ପୂଜାଅର୍ଚ୍ଚନା କରିବା ସହିତ ଚାଙ୍ଗୁବଜାଇ ଚାଙ୍ଗୁଗୀତ ଗାନକରିଥାନ୍ତି । ଚାଙ୍ଗୁଗୀତରେ ଚାଙ୍ଗୁ ବାଦ୍ୟର ଉତ୍ପତ୍ତି, ଦେବାଦେବୀଙ୍କ ବର୍ଣ୍ଣନା, ସମାମାଜିକ ଚଳଣୀ,ପୌରାଣିକ କଥାବସ୍ତୁକୁ ଗାନ କରିଥାନ୍ତି । ଚାଙ୍ଗୁଗୀତରେ ଡାଙ୍ଗୁଆ ଡାଙ୍ଗୁଳିଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ସାଂପ୍ରତିକ ସମୟରେ ବାଥୁଡି ଜନଜାତି ସମୟ ସହିତ ତାଳଦେଇ ଗତିକଲେ ମଧ୍ୟ ନିଜ ପରଂପରା ଓ ଚାଙ୍ଗୁଗୀତକୁ ଦୂରେଇ ଦେଇନାହାନ୍ତି ।

**ପ୍ରମୁଖ ଶବ୍ଦାବଳୀ :** କୁଣ୍ଡଳୀ, ଖଞ୍ଜାଗୀତ, କିଳା, ଜୁଆଳି, ଡାଙ୍ଗୁଆ, ଡାଙ୍ଗୁଳି

## I. ଉପକ୍ରମ

ବିଶ୍ୱର ଯେ କୌଣସି ଭାଷାର ସାହିତ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କଲେ ସ୍ୱଷ୍ଟ ହୁଏ ଯେ, ସାହିତ୍ୟର ଲିଖିତ ରୂପ ସୃଷ୍ଟି ହେବା ପୂର୍ବରୁ ମୌଖିକ ସାହିତ୍ୟ ବା ଲୋକ ସାହିତ୍ୟ ସୃଷ୍ଟି ହୋଇଛି । ଲୋକ ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରୁ ବଳିଷ୍ଠ ବିଭାଗ ହେଉଛି ଲୋକଗୀତ । କୁହାଯାଏ ଆଦିମାନବ ବଣ ଜଙ୍ଗଲରେ ବସବାସ କରୁଥିବା ସମୟରେ ଆରଣ୍ୟକ୍ ପରିବେଶର ପ୍ରାକୃତିକ ସୌନ୍ଦର୍ଯ୍ୟ, ଆକାଶର ନିଳିମା,ଫୁଲର ସୌରଭ, କୋଇଲିର କୁହୁକୁହୁ ତାନ,ମହୁ ମାଛିର ଗୁଣୁଗୁଣୁ ଶବ୍ଦ ଝରଣାର କୁଳୁକୁଳୁ ନାଦ, ବର୍ଷାର ରିମ୍ ଝିମ୍ ଶବ୍ଦ ତା ପ୍ରାଣକୁ କେବଳ ଆନନ୍ଦିତ କରିଛି ତା ନୁହେଁ ବରଂ ହୃଦୟକୁ କରିଛି ପୁଲକିତ ଓ ଆନ୍ଦୋଳିତ,ଫଳରେ ତା କଣ୍ଠରୁ ଝରି ଯାଇଥିଲା ସଙ୍ଗୀତର ମୁର୍ଚ୍ଛନା । ତେଣୁ ଲୋକସାହିତ୍ୟର ସ୍ରଷ୍ଟା ପ୍ରଥମେ ଗାଇଛି ଓ ପରେ କହିଛି । ମନୁଷ୍ୟ ଯାହା ଗାଇଛି ତାହା ପ୍ରାକୃତିକ ଓ ସ୍ୱାଭାବିକ ଏଥିରେ କୃତ୍ରିମତାର ଚିହ୍ନ ନଥାଏ ।

ମଣିଷ ପ୍ରକୃତି କୋଳରେ ବଢୁଛି,ହସୁଛି ଖେଳୁଛି, ସ୍ୱପ୍ନ ଦେଖୁଛି, କଳ୍ପନାରେ ଭାବ ପ୍ରବଣ ହେଉଛି । ଆଶା ଆକାଂକ୍ଷାର ତାଜମହଲ ଗଢୁଛି । ହତାଶା ମରୁରେ ଧାଉଁଛି, ତଥାପି ସେ ହସୁଛି, । ଦୁଃଖ ନାହିଁ, ଅବସାଦ ନାହିଁ, ଗାଉଛି ଅବାରିତ ଗୀତ,କି ମଧୁର ସେ ସ୍ୱର । ପଲ୍ଲୀଜୀବନର ବାସ୍ତବ ଚିତ୍ରକୁ ଗୀତରେ ଗାଇ ସମସ୍ତଙ୍କୁ କରେ ସେ ମନ ମୁଗ୍ଧକର । ଏଥିରୁ ବା ବାଦପଡନ୍ତେ କିପରି ବାଥୁଡି ଜନଜାତି । ତାଙ୍କ ଗୀତରୁ ମିଳେ ସେମାନଙ୍କ ଦୈନନ୍ଦିନ ଜୀବନର ଚିତ୍ର । ଦୈନନ୍ଦିନ ଜୀବନରେ ଘଟିଯାଉଥିବା ସୁଖ ଦୁଃଖ, ଘଟଣା ଅଘଟଣା, ପର୍ବ ପର୍ବାଣୀ, ଓଷାବ୍ରତ,ଜାନି ଯାତ୍ରା ଓ ବିବାହ ଉତ୍ସବର ବହୁତଥ୍ୟ ଜାଣି ହୁଏ ତାଙ୍କ ସଙ୍ଗୀତରୁ । ବାଥୁଡି ସଂପ୍ରଦାୟର ବହୁ ଲୋକଗୀତ ରହିଥିବାର ଜଣାଯାଏ ଯଥା ଚାଙ୍ଗୁଗୀତ, କାନ୍ଦଣା ଗୀତ,ଦୋଳିଗୀତ, ଶିଶୁଗୀତ,ଖଞ୍ଜାଗୀତ ବା ଡାଙ୍ଗୁଆ ଡାଙ୍ଗୁଳିଗୀତ। ଏହା ମୁଖତଃ ପର୍ବ ପର୍ବାଣୀ,ବିବାହ ଉତ୍ସବ ଓ କୃଷି କାର୍ଯ୍ୟ କଲା ବେଳେ ବୋଲାଯାଇ ଥାଏ । କ୍ଷେତରେ କାମ କରିବା ସମୟରେ ଆପଣାର ଶାରିରୀକ କ୍ଳାନ୍ତିକୁ ଲାଘବ କରିବା ପାଇଁ ସ୍ୱତଃସ୍ଫୁତ ଭାବେ ସଂଙ୍ଗୀତର ମୂର୍ଚ୍ଛନା ତୋଳି ଦେଇଥାନ୍ତି ଏ ସଂପ୍ରଦାୟର ଲୋକ ।

## II. ଚାଙ୍ଗୁର ଉତ୍ପତ୍ତି ସଂପର୍କରେ ସଂକ୍ଷିପ୍ତ ଧାରଣା

ଓଡ଼ିଶାରେ ବାଷଠି ପ୍ରକାର ଆଦିବାସୀ ସଂପ୍ରଦୟର ଲୋକ ବସବାସ କରନ୍ତି । ପ୍ରତ୍ୟେକ ଆଦିବାସୀ ସଂପ୍ରଦାୟର ଏକ ସ୍ୱତନ୍ତ୍ର ନିଜସ୍ୱ ନୃତ୍ୟ ରହିଛି । ଓଡ଼ିଶାର ଆଦିବାସୀ ନୃତ୍ୟ ପରଂପରାରେ ଚାଙ୍ଗୁନାଚର ସ୍ଥାନ ମଧ ନିଆରା । ଓଡିଶାର ବିଭିନ୍ନ ପ୍ରାନ୍ତରେ ବସ ବାସକରୁଥିବା ବାଥୁଡି,

ଭୂୟାଁ,ସାଉନ୍ତି, ଖଡିଆ, ଶବର, ଜୁଆଙ୍ଗ ଓ ଲୋଧା ସଂପ୍ରଦାୟର ଏହା ଏକ ପ୍ରମୁଖ ନୃତ୍ୟ । `ଚାଙ୍ଗୁ ନାଚ ବା ଚାଙ୍ଗୁ ଗୀତର ମୁଖ୍ୟ ଉପାଦାନ ହେଉଛି ଚାଙ୍ଗୁ । ଚାଙ୍ଗୁ ସୃଷ୍ଟି ସଂପର୍କରେ ବହୁ କଥା ଦେଖିବାକୁ ମିଳେ ବଡାମ ପୁରାଣରେ ଉଲ୍ଲେଖ ଅଛି ଚାଙ୍ଗୁ ସୃଷ୍ଟି ପର୍ବରୁ ବାଥୁଡି ଜନଜାତି ଜଙ୍ଘ ଓ ଛାତିରେ ଚାପୁଡା ମାରି ନାଚିକୁଦି ଜୀବନକୁ ଉପଭୋଗ କରୁଥିଲା ସେଇ ଚାପୁଡାରୁ ଚାଙ୍ଗୁର ସୃଷ୍ଟି। ବଡାମ ପୁରାଣରେ କୁହାଯାଇଛି

"ଚାପୁଡା ମାରି ଅଙ୍ଗରୁ ବାଦ୍ୟ କଲା ଜାତ
ତେଣୁ କରି ବାଦ୍ୟ ନାମ ଚାଙ୍ଗୁ ହେଲା ଖ୍ୟାତ ।
ଚାପୁଡା ମାରିଣ ସେହୁ ଜାତ ହେଲା ଅଙ୍ଗୁ
ତେଣୁ ପ୍ରଚାର ହୋଇଲା ନାମ ତାର ଚାଙ୍ଗୁ ।
ଚାଙ୍ଗୁ ବାଦ୍ୟ ବାଇବାଇ ଗାଇଲା ସେ ନାମ
ଜୟ ମା ସାହାଣ ଦେଇ ଜୟ ହେ ବଡାମ" । (୧)

ଚାଙ୍ଗୁ ନାଚ ଗୀତ କେବେ ସୃଷ୍ଟି ହେଇଥିଲା ତାହା କହିବା ସମ୍ଭବ ନୁହେଁ ।ଚାଙ୍ଗୁ ନାଚର ଉତ୍ପତ୍ତି ସଂପର୍କରେ ଏକ କିମ୍ବଦନ୍ତି ରହିଛି । କୁହାଯାଏ ପୂର୍ଣ୍ଣମୀ ତିଥିରେ ଶିବ ପାର୍ବତୀ ମାନସରୋବର କୂଳରେ ବିହାର କରୁଥିଲେ.। ପୂର୍ଣ୍ଣମୀ ଚନ୍ଦ୍ରକୁ ଦେଖି ଦେବୀ ପାର୍ବତୀ ଆନନ୍ଦରେ ଉତଫୁଲିତ ହୋଇ ଶିବକୁ ଅନୁରୋଧ କଲେ, ପୂର୍ଣ୍ଣଚନ୍ଦ୍ର ପରି ଏକ ବାଦ୍ୟ ଆଣି ଦେଲେ, ବାଦ୍ୟ ବଜାଇ, ଗୀତ ଗାଇ ଏଇ ପୂର୍ଣ୍ଣମୀ ରାତ୍ରିର ଜହ୍ନ ଆଲୁଅରେ ରାତ୍ରିଯାପନ କରିଥାନ୍ତେ । ଶିବ ତତକ୍ଷଣାତ୍ ବଟ ବୃକ୍ଷର ଓହଳକୁ ଆଣି ଗୋଲାକାର କୁଣ୍ଡଳୀ ତିଆରି କଲେ ଓ ମୃଗ ଚର୍ମ ଆଣି ଛାଉଣି କଲେ। ଦଶ ଦିଗପାଳଙ୍କୁ ଆହ୍ୱାନ କରି ଦଶଟି କିଳା ଦେବାରୁ ତାହା ଏକ ବାଦ୍ୟରେ ପରିଣତ ହୋଇଗଲା ଓ ତାହାର ନାମ 'ଚାଙ୍ଗୁବାଦ୍ୟ' ହେଲା । ଚାଙ୍ଗୁ ନୃତ୍ୟର ଉତ୍ପତ୍ତି ସଂପର୍କିତ ଆଉ ଗୋଟିଏ ଲୋକମତ ହେଉଛି, ଶିବ ପର୍ବତୀଙ୍କୁ ବିବାହ କଲା ପରେ ସାତ ଜଣ ଅପସରାଙ୍କ ସହିତ ସସ୍ତ୍ରୀକ କୁଣ୍ଡଳୀ ନୃତ୍ୟ କରି ଖୁସି ମନାଇଲେ । କୁଣ୍ଡଳୀ ଆକାରରେ ଘୂରି ଘୂରି ନୃତ୍ୟ କରାଯାଉଥିବା ହେତୁ, ନୃତ୍ୟର ନାମ 'ବାଇକୁଣ୍ଡଳ' । ତେଣୁ ବୋଧହୁଏ ଚାଙ୍ଗୁର ଅନ୍ୟନାମ 'ବାଇକୁଣ୍ଡଳ' ଏବଂ ଚାଙ୍ଗୁ ନାଚର ନାମ 'ବାଇକୁଣ୍ଡଳୀ' ନୃତ୍ୟ ନାମରେ ପରିଚିତ । ଚାଙ୍ଗୁ ସଂପର୍କରେ ବହୁ ଲୋକ ବହୁ ମତ ପ୍ରଦାନ କରି ଅଛନ୍ତି । ଚାଙ୍ଗୁଗୀତରେ ଚାଙ୍ଗୁବଜାଳୀ ଚାଙ୍ଗୁ ଜନ୍ମର ବୃତ୍ତାନ୍ତ ମଧ ଗାନକରିଥାଏ।

ଚାଙ୍ଗୁ ଜନ୍ମ ବୃତ୍ତାନ୍ତ ଶୁଣ ଯେ ଭକତ
ଶୁଣିଲେ ଚରିତ ହୋଇବ ମୁକତ
ଚାଙ୍ଗୁ ଅଟେ ଶିବଙ୍କ ମାନସ ସ୍ୱତ ।
ମାନସରୋବର କୂଳେ
ହରଗୌରୀ ବିହାର କାଳେ
ଆକାଶରେ ଚାନ୍ଦ ଦେଖିଣ ଆନନ୍ଦ
ଚାନ୍ଦ ପରି ବାଜା ଦିଅ ।
ଦେଖିବି ମୁଁ ତାଣ୍ଡବନୃତ୍ୟ, ବଜାଇ ସେ ବାଜା ତ୍ୱରିତ
ପାର୍ବତୀ ବଚନେ ଆନନ୍ଦିତ ମନେ
ବଟ ଓହଳର ଶରୀର, କସ୍ତୁରୀ ହରିଣ ଚର୍ମର
ଦଶ ଦିଗପାଳ ହେଲେ ଦଶକିଳା
ବର ଦେଲେ ପ୍ରଭୁ ଶଙ୍କର, ଚାଙ୍ଗୁ ତୁହି ମୋର କୁମର । (୨)

### III. ଚାଙ୍ଗୁଗୀତ

ଚାଙ୍ଗୁ ନୃତ୍ୟ ଗୀତ ପ୍ରଧାନ । ବାଥୁଡି ସଂପ୍ରଦାୟର ଚାଙ୍ଗୁ ଗୀତର ସ୍ଥାନ ବହୁ ଉଚ୍ଚରେ । କେତେକ ମତ ଦିଅନ୍ତି ଚାଙ୍ଗୁ ନୃତ୍ୟ କୁମାର ପୂର୍ଣିମାରୁ ଆରମ୍ଭ ହୋଇ ଡାଳିପର୍ବରେ ସମାପ୍ତ ହୋଇଥାଏ । ଆଉ କେତେକ ମତ ଦିଅନ୍ତି ଚୈତ୍ର ମାସରେ ଆଦିବାସୀ ମାନଙ୍କର ମୁଖ୍ୟ ପର୍ବ ପାଳନ ହୁଏ । ବାଥୁଡି ମଧ ଚଇତ ମାସକୁ ଗ୍ରହଣ କରି ବଡାମ ପୂଜାକରେ । କୁହାଯାଏ

'ବସନ୍ତ ଋତୁର ଚଇତି ମାସକୁ
ବାଛିଲା ବାଥୁଡି ଜାତି
କରିବା ପାଇଁ ଏ ବଡାମ ଉତ୍ସବ
ନ ରଖିଣ ବାରତିଥି'

ବଡାମ ଠାକୁର ହିଁ ଚାଙ୍ଗୁ ନାଚ ଗୀତର କେନ୍ଦ୍ର ବିନ୍ଦୁ । ବାଥୁଡି ସଂପ୍ରଦାୟର ଲୋକେ ପରିଶ୍ରମି । ଦିନସାରା ପରିଶ୍ରମ କରି ସଂନ୍ଧ୍ୟା ସମୟରେ ବଡାମ ଶାଳରେ ଚାଙ୍ଗୁ ବଜାଇ ନିଜର କ୍ଳାନ୍ତିକୁ ଲାଘବ କରିଥାନ୍ତି । ପ୍ରତ୍ୟେକ ଶନିବାର ଦିନ ସଂନ୍ଧ୍ୟା ସମୟରେ ଗ୍ରାମ ମଧରେ ଥିବା ବଡାମ ଶାଳରେ ବାଥୁଡି ସଂପ୍ରଦାୟର ଲୋକମାନେ ଧଳା ପୋଷାକ ପରିଧାନ କରି ପୂଜା ଅର୍ଚ୍ଚନା ସାଙ୍ଗକୁ ଚାଙ୍ଗୁ ନାଚ ଓ ଚାଙ୍ଗୁ ଗୀତ ବୋଲିଥାନ୍ତି। ଚାଙ୍ଗୁ ଗୀତର ପ୍ରାରମ୍ଭ ଘଟିଥାଏ ଇଷ୍ଟଦେବ ବଡାମଙ୍କ ବନ୍ଦନାରୁ, ବନ୍ଦନାରେ ଭରି ରହିଥାଏ ଭକ୍ତର ସମର୍ପଣଭାବ। ସମର୍ପଣଭାବକୁ ନେଇ ସେ ଗାଇ ଉଠେ -

'ଶିରି ରାମ ରାମ ଯେ ଗୋବିନ୍ଦ ରାମରାମ
ଶିତଳ ବଉଳ ମୂଳେ ଡଣ୍ଡେ ବିଶିରାମ
କାଟି ଗନି ମୁଣ୍ଡା ଗୋ କାଟି ଗନି ମୁଣ୍ଡା
ଏଇ ପଦ ବନ୍ଦାଣ ଲାଗେ ବଡାମର ବୁଢା' । (୩)

ଠିକ୍ ସେହିପରି ମା ବଡାମଣୀକୁ ଲକ୍ଷ୍ୟ କରି ଗାଇ ଉଠେ -

'କୁଳେହି ମାଇନି ଗୁଡି ଗୋ, କୁଳେଇ ମାଇନି ଗୁଡି
ଏଇ ପଦ ବନ୍ଦାଣ ଲାଗେ, ବଡାମର ବୁଢୀ ।

ଶିମିଳପାଳରେ ଅବସ୍ଥିତ ଅଠରଦେଉଳ ବାଥୁଡି ଜାତିର ପବିତ୍ର ସ୍ଥାନ । ଚୈତ୍ର ମାସର ଅଠର ଦିନରେ ଶିମିଳିପାଳ ଘଂଚ ଜଙ୍ଗଲ ମଧରେ କେଉଁ କାଳରୁ ଅବସ୍ଥିତ ଥିବା ଅଠର ଦେଉଳରେ ପାଞ୍ଚଦିନ ଧରି ଜାତିର ଆରାଧ ଦେବା ଦେବୀ ବଡାମ ବଡାମଣୀକୁ ପୂଜା ଅର୍ଚ୍ଚନା କରିବା ସହିତ ସଂନ୍ଧ୍ୟା ସମୟରେ ବାଥୁଡି ଜାତିର ବୀର ବାଦ୍ୟ ଚାଙ୍ଗୁ ନୃତ୍ୟ ଅନୁଷ୍ଠିତ ହୋଇଥାଏ । ଚାଙ୍ଗୁ ଗୀତରେ ମଧ ଅଠରଦେଉଳର ଦେବା ଦେବୀଙ୍କ ବର୍ଣ୍ଣନା ଦେଖିବାକୁ ମିଳେ ।

'ଠାକୁର ହେ ଠାକୁର ହେ ବଡାମ ଠାକୁର
ଶିମିଳିପାହାଳେ ଅଠର ଦେଉଳେ
ମଉନେ ରହିଲ କିମ୍ପାଇ ଏଥର
ବାରଦଣ୍ଡା ଶିମିଳିପାଳ,
ମେଘାସନ ଉଚ୍ଚ ଶୈଳ
ସବୁଠି ରହିଛ ବଡବଲାଉଛ
ରାମରଜା ଦୁଆରସେଣି

ୟଉରନ୍ଧା ବରେହି ପାଣି
ଅସୁରିଆ ହାଡ ଶିମିଳିଆ ଗଡ
ଆଦରି ରହିଛି ସେ ବିସିପୁର
ଠାକୁର ହେ ଠାକୁର ହେ ବଡାମ ଠାକୁର' । (୪)

କେବଳ ଯେ ବାଥୁଡି ସଂପ୍ରଦାୟର ଲୋକ ଅଠର ଦେଉଳର ଦେବା ଦେବୀଙ୍କୁ ପୂଜା କରନ୍ତି ତାହା ନୁହେଁ । ବଡାମ ଠାକୁରଙ୍କୁ କୃଷି କାର୍ଯ୍ୟର ଦେବତା ଭାବରେ ଗ୍ରହଣ କରନ୍ତି । ପ୍ରତ୍ୟେକ ଗ୍ରାମର ବଡାମ ଶାଳରେ ଭଙ୍ଗା ଲଙ୍ଗଳ ଜୁଆଳି ଶୋଭାପାଏ । ବାଥୁଡି ସଂପ୍ରଦାୟର ବିଶ୍ୱାସ ରହିଛି କୃଷି ପାଇଁ ବ୍ୟବହୃତ ସମସ୍ତ ଉପକରଣ ବଡାମ ଠାକୁରଙ୍କ ଦାନ । ତେଣୁ ଚାଷ କାର୍ଯ୍ୟକରିବା ସମୟରେ ଲଙ୍ଗଳ ଜୁଆଳି ଭାଙ୍ଗିଗଲେ ବାଡାମ ଶାଳରେ ଆଣି ରଖିଥାନ୍ତି । ଚାଙ୍ଗୁ ଗୀତରେ ମଧ୍ୟ ଲଙ୍ଗଳ ଜନ୍ମର ଚିତ୍ର ଦେଖିବାକୁ ମିଳେ ।

'ଶୁଣୁଥବେ କଉତୁକେ ଅପୂର୍ବ ବିଧାନ
କହିବାକୁ ଇଚ୍ଛା ମୋର ଯେ ଲଙ୍ଗଳ ବିଧାନ
କେଉଁ ପରି ବଡାମ ଯେ ଲଙ୍ଗଳ କାଟିଲେ
ଜଙ୍ଗଲ ମଧ୍ୟରେ ଆଣି ଭିଆଇଲେ ।
ଦ୍ୱାପର ଯୁଗରେ ବଳରାମ କହିଥିଲା
ନିଖାରୀ ବଡାମ ମର୍ତ୍ତେ ଅବର୍ତ୍ତନ ହେଲା' । (୫)

ଲୋକ କଥାରେ ରହିଛି ବଡାମ ୧୨ବର୍ଷ ବନରେ ରହି ମଧ୍ୟ ଲଙ୍ଗଳ ତିଆରି କରିନଥିଲେ । ୧୨ ବର୍ଷ ପରେ ବଡାମଣୀ ଖୋଜି ଖୋଜି ବଡାମଙ୍କ ନିକଟରେ ଯାଇ ପହଁଚିଲେ । ବଡାମକୁ ପଚାରିଲେ ଏତେ ବର୍ଷ ତମେ କଣ ଖାଇ ଜୀବନ ବିତାଉ ଥିଲ । ବଡାମ କହିଲେ ବଣରେ ମିଳୁଥିବା ଆଳୁଖାଇ ଜୀବନ ନିର୍ବାହ କରୁଥିଲି । ବଡାମଣୀ ଅଭିଶାପ ଦେବାରୁ ମିଠା ଆଳୁ ପିତା ହେବା କଥା ମଧ୍ୟ ଶୁଣିବାକୁ ମିଳେ। ବଡାମଣୀଙ୍କ ପରାମର୍ଶ ନେଇ ବଡାମ ଲଙ୍ଗଳ ତିଆରି କଲେ । ଏକଥା ମଧ୍ୟ ଚାଙ୍ଗୁ ଗୀତରେ ଦେଖିବାକୁ ମିଳେ।

'ଲଙ୍ଗଳ କାଟିବ ତୁମେ ବତାଇ ଦେଉଅଛି
ବଙ୍କେଇ ହୋଇଣ ମୁହିଁ ଆଡରେ ଶୋଇଛି
ଦେଖି କରି ଲଙ୍ଗଳ କାଟିବ ହେ ନିଖାରୀ ।
ବଙ୍କେଇ ହୋଇଣ ବଡାମଣୀ ଯେ ଶୋଇଲେ
ଦେଖି ତା ନିଖାରୀ ତହିଁ ଲଙ୍ଗଳ କାଟିଲେ' । (୬)

ବଡାମ ଜଙ୍ଗଲ ମଧ୍ୟରେ ଲଙ୍ଗଳ କାଟିସାରିଲା ପରେ ବଡାମଣୀ ଈଷ ଓ ଜୁଆଳି କାଟିବା ପାଇଁ ପ୍ରେରଣା ଦେଲେ । ତାହାର ଚିତ୍ର ମଧ୍ୟ ଚାଙ୍ଗୁଗୀତରେ ଦେଖିବାକୁ ମିଳେ ।

"ଭଦ୍ରୁ କାଠକୁ କାଟି ଜୁଆଳି ଚାଞ୍ଛିଲେ
ସିସୁପା ବୃକ୍ଷକୁ କାଟି ଈଷକୁ ଚାଞ୍ଛିଲେ
ହରସ ମନେ ଗୃହେ ଚାଲ ଯିବା ବାହୁଡିଣ ।" (୭)

ଚାଙ୍ଗୁ ଗୀତରେ ଯେ କେବଳ ଦେବା ଦେବୀ କଥା ରହିଛି ତାହା ନୁହେଁ ।ଚାଙ୍ଗୁ ଗୀତରେ ମଧ୍ୟ ଭରି ରହିଛି ପ୍ରେମ,ପ୍ରଣୟର ଫଲଗୁ ଧାରା । ପ୍ରେମ ବିନା ଏ ଜଗତ ଅସାର, ପ୍ରେମ ମାନବ ଜୀବନର ମୁଖ୍ୟ ବସ୍ତୁ । ଜଞ୍ଜାଳମୟ ଜୀବନରେ ପ୍ରେମ ବିନା ଜୀବନ ନିରସ ମନେ ହୁଏ । ତେଣୁ ସେ ଉପଲବ୍ଧି କରେ ଜୀବନ ପୁଷ୍ପରେ ପ୍ରେମ ହିଁ ମଧୁ। ପ୍ରେମ ହୀନ ଜୀବନ ମରୁଭୂମି ସଦୃଶ୍ୟ । ଚାଙ୍ଗୁ ଗୀତରେ ନାରୀର ସୌନ୍ଦର୍ଯ୍ୟ ବର୍ଣ୍ଣନା ବେଶ୍ ରସପୂର୍ଣ୍ଣ । ନାରୀର ମୁଖ ସୌନ୍ଦର୍ଯ୍ୟକୁ ପୂର୍ଣ୍ଣମୀ ଜହ୍ନ ସହିତ ତୁଳନା କରି ସେ ଗାଇ ଉଠେ –

'ଆଖିରେ କଜଳଗାର ଦିଶୁଅଛି କି ସୁନ୍ଦର
ପୂର୍ଣ୍ଣମୀ ଚାନ୍ଦପରି ମୁଖ ତାହାର
ମଥାରେ ବାନ୍ଧିଛି ବେଣୀ ଫୁଲ କଣ୍ଢା ଅଣ୍ଟେ ପୁଣି
ତାକୁ ଦେଖିଲେ ହରେ ଦୁଃଖ ମୋହର' । (୮)

ଚାଙ୍ଗୁଗୀତରେ ମଧ୍ୟ ବାଥୁଡି ଜାତିର ଦୈନନ୍ଦିନ ଜୀବନର ସାମାଜିକ ଚଳଣି, ରୀତିନୀତି, ଆର୍ଥିକସ୍ଥିତିର ସୁନ୍ଦର ଚିତ୍ର ଦେଖିବାକୁ ମିଳେ ।

'କାଠି ଖଣ୍ଡେ ଭାଙ୍ଗୁଥିଲି ପତ୍ର ଖଣ୍ଡେ ତୋଳୁଥିଲି
ସୁକୁନା ଶାଗରେ ନାନୀ ହଳଦୀ ମିଶାନି
ତତୋ ଦେଖିଲେ ଲାଗେ ଶରଧା ଚନ୍ଦ୍ରବଦନୀ' ।

କେବଳ ଯେ ଚାଙ୍ଗୁ ଗୀତରେ ପ୍ରେମ ,ପ୍ରଣୟ ଓ ଆର୍ଥିକସ୍ଥିତିର ଚିତ୍ର ପ୍ରକାଶ ପାଇଛି ତା ନୁହେଁ, ଚାଙ୍ଗୁ ଗୀତରେ ମଧ୍ୟ ଝିଅ ବୋହୂ ହୋଇ ଶାଶୁ ଘରକୁ ଗଲେ ଶାଶୁ, ଶଶୁରଙ୍କୁ କିପରି ବ୍ୟବହାର କରିବ ତାହା ଦେଖିବାକୁ ମିଳେ ।

'ପିତା ସମାନ ତୁ ମଣିବୁ ଶଶୁରଙ୍କୁ ତୋହର
ଶାଶୁଙ୍କୁ ମଣିବୁ ଜନନୀ ଝିଅ ରଖ ମନରେ
କେହି ନ ଉଠୁଣୁ ଉଠିବୁ ବାସି ଶେଯକୁ ଛାଡି
ଶେୟ ଉଠାଇଣ ଖରକି ଦେବୁ କହୁଛି ଫେଡି' । (୯)

ଚାଙ୍ଗୁ ଗୀତରେ ମଧ୍ୟ ସ୍ନେହ, ମମତା, ମୈତ୍ରୀ ଭାବ ପ୍ରକଟିତ ହୋଇଥାଏ । ଝିଅ ଶାଶୁଘରେ ଗୁରୁଜନ,ସ୍ୱାମୀ, ନଣନ୍ଦ, ଦିଅରକୁ ନେଇ କିପରି ଚଳିବ ତାର ଚିତ୍ର ଦେଖିବାକୁ ମିଳେ।

"କଳି ଶୁଣିବାର ପାଇଁକି ଠିଆ ନ ହେବୁ ଦାଣ୍ଡେ
ଗୁରୁଜନ ସଙ୍ଗେ ଝିଅଲୋ ଲୁଗା ରଖିବୁ ମୁଣ୍ଡେ
× × × ×
ନଣନ୍ଦ ଭର୍ତ୍ସନା ସହିବୁ ଯାହା କହିବେ ଯେତେ
ଗାଳିମନ୍ଦ ତାକୁ ନ ଦେବୁ ଝିଅ କହୁଛି ତୋତେ
× × × ×
ଦିନ ପରେ ରାତି ଲାଗିଛି ଏହି କଳି ସଂସାରେ
ଛୋଟ ଭାଇ ପରି ମଣିବୁ ଥିଲେ ଦିଅର ଘରେ" । (୧୦)

ଚାଙ୍ଗୁ ଗୀତରେ ଯେ କେବଳ ଦେବା ଦେବୀ ଏବଂ ସମାଜିକ କଥାବସ୍ତୁ ରହିଛି ତା ନୁହେଁ । ଚାଙ୍ଗୁ ଗୀତରେ ରାଧାକୃଷ୍ଣଙ୍କ ପ୍ରେମ ବର୍ଣ୍ଣନାର କଥା ମଧ୍ୟ ଦେଖିବାକୁ ମିଳେ । ଏହା ବାଥୁଡି ଜନଜାତିକୁ କେବଳଯେ ରସାପ୍ଲୁତ କରେ ତା ନୁହେଁ ବରଂ ନୀତି ଶିକ୍ଷା ମଧ୍ୟ ପ୍ରଦାନ କରେ । ରାଧାକୃଷ୍ଣଙ୍କ ପ୍ରେମକଥାକୁ ଚାଙ୍ଗୁବଜାଳୀ ସୁନ୍ଦର ଭାବରେ ଗାନ କରିଥାଏ । ଯଥା

'ଏବେ ପାହିଲା ରଜନୀ
ଶ୍ୟାମ ଛାଡ ଲୁଗା କାନି
ଦିବସରେ ପ୍ରୀତିକରା ପୁରୁଷଙ୍କ ହାନୀ
ଶ୍ୟାମ ଛାଡ ଲୁଗା କାନି' ।

ଚାଙ୍ଗୁ ଗୀତରେ ଯେ କେବଳ ଦେବା ଦେବୀ ଏବଂ ସମାଜିକ କଥାବସ୍ତୁ ରହିଛି ତା ନୁହେଁ । ଚଙ୍ଗୁଗୀତରେ ରାୟାୟଣ, ମହାଭାରତ, ମଥୁରାମଙ୍ଗଳକୁ ମଧ୍ୟ ଚାଙ୍ଗୁ ବଜାଳି ଚାଙ୍ଗୁ ବଜାଇ ଗୀତ ଗାଇଥାଏ ।

## IV.ଉପସଂହାର

ଉତ୍ତର ଓଡିଶାରେ ବସବାସକରୁଥିବା ବାଥୁଡି ସଂପ୍ରଦାୟର ଚାଙ୍ଗୁଗୀତର ସ୍ଥାନ ବହୁ ଉଚ୍ଚରେ । ବାଥୁଡି ସଂପ୍ରଦାୟ ସହ ଚାଙ୍ଗୁଗୀତ ଅଙ୍ଗାଙ୍ଗୀ ଭାବେ ଜଡିତ । ବାଥୁଡି ସଂପ୍ରଦାୟର ଚାଙ୍ଗୁଗୀତ ଶ୍ରୋତାଙ୍କୁ ସରସ ଓ ରୁଚିପୂର୍ଣ୍ଣ କରିଥାଏ ,ତା ନୁହେଁ ବାଥୁଡି ସଂପ୍ରଦାୟର ଚାଙ୍ଗୁଗୀତରେ ଭରି ରହିଛି  ସମାଜର ନୀତିଶିକ୍ଷା ।ସମୟ ସହିତ ତାଳଦେଇ ବଢି ଚାଲିଛି ଆମ ସଭ୍ୟତା ଏବଂ ସଂସ୍କୃତି । ବର୍ତ୍ତମାନ ଦେଖିବାକୁ ଗଲେ ଆମ ସଂସ୍କୃତିରେ ଦେଖାଦେଇଛି ପରିବର୍ତ୍ତନ। ଠିକ୍ ସେହିଭଳି ବାଥୁଡି ସଂପ୍ରଦାୟ ସମୟ ସହିତ ତାଳ ଦେଇ ଆଗକୁ ବଢୁଥିବାରୁ ସଂସ୍କୃତିରେ ଆସିଛି ପରିବର୍ତ୍ତନ । ଏତେ ସବୁ ପରିବର୍ତ୍ତନ ସତ୍ତ୍ୱେ ଏବେ ବି ବାଥୁଡି ସଂପ୍ରଦାୟର ଲୋକେ ଚାଙ୍ଗୁଗୀତକୁ ଭୁଲି ନାହାନ୍ତି । ଆଜି ମଧ୍ୟ ପ୍ରତ୍ୟେକ  ଗ୍ରାମରେ ସନ୍ଧ୍ୟା ସମୟରେ ବାଥୁଡି ସଂପ୍ରଦାୟର ଲୋକମାନେ ଚାଙ୍ଗୁବଜାଇ ଗୀତ ବୋଲିଥାନ୍ତି ।  ବାଥୁଡି ଜାତି ନିଜ ସଂସ୍କୃତି ଓ ପରଂପରାକୁ  ଆଜି ମଧ୍ୟ ଭୁଲି ପାରି ନାହିଁ ।

**ପ୍ରାନ୍ତଟୀକା:**

୧. ନାଏକ ରବିନ୍ଦ୍ର ନାଥ , ନାଏକ ଗୌରହରି (ସଂପାଦନା) ବଡାମ ପୁରାଣ- ପୃଷ୍ଠା -୪୫

୨. କେନ୍ଦୁଝରର ହଳଦୀଟ୍ଚା ଗ୍ରାମରୁ ସଂଗ୍ରହ

୩. ମୟୂରଭଂଜର କାଦମଡକ ଗ୍ରାମରୁ ସଂଗ୍ରହ

୪. ମୟୂରଭଂଜର କାଦମଡକ ଗ୍ରାମରୁ ସଂଗ୍ରହ

୫. କେନ୍ଦୁଝରର ତେଲିପଡା ଗ୍ରାମର ଚାଙ୍ଗୁଆଦଳ ନିକଟରୁ ସଂଗ୍ରହ

୬. କେନ୍ଦୁଝରର ତେଲିପଡା ଗ୍ରାମର ଚାଙ୍ଗୁଆଦଳ ନିକଟରୁ ସଂଗ୍ରହ

୭. କେନ୍ଦୁଝରର ତେଲିପଡା ଗ୍ରାମର ଚାଙ୍ଗୁଆଦଳ ନିକଟରୁ ସଂଗ୍ରହ

୮. ନାଏକ ରବିନ୍ଦ୍ର, ନାୟକ ରାଜକିଶୋର (ସଂପାଦନା ) ବାଥୁଡି ଜାତିର ଅଜ୍ଞାତ ଅଧ୍ୟାୟ – ପୃଷ୍ଠା-୨୩

୯. କେନ୍ଦୁଝରର ଗୋରାଣ୍ଡିଯୋଡି ଗ୍ରାମର ଚାଙ୍ଗୁଆଦଳ ନିକଟରୁ ସଂଗ୍ରହ

୧୦. କେନ୍ଦୁଝରର ଗୋରାଣ୍ଡିଯୋଡି ଗ୍ରାମର ଚାଙ୍ଗୁଆଦଳ ନିକଟରୁ ସଂଗ୍ରହ

## ସହାୟକ ଗ୍ରନ୍ଥସୂଚୀ


1. ଓଡ଼ିଶା ସାହିତ୍ୟ ଏକାଡେମୀ(ସଂ), ଓଡ଼ିଆ ସାହିତ୍ୟ ଓ ଆଦିବାସୀସାହିତ୍ୟ  ଭୁବନେଶ୍ୱର, ଦ୍ୱିତୀୟ ସଂସ୍କରଣ ୨୦୦୪
2. ଧଳ ଗୋଲୋକ ବିହାରୀ, ଭାଷାଶାସ୍ତ୍ର ପରିଚୟ, ରାଜ୍ୟପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର,ଚତୁର୍ଥ ସଂସ୍କରଣ,୨୦୦୮
3. ନାୟକ ଶରତ ଚନ୍ଦ୍ର, ମୟୂରଭଂଜ ସଂସ୍କୃତିରେ ବାଥୁଡି ଜନଜାତି, ମେଘାସନୀ ପ୍ରକାଶନୀ, ବାରିପଦା, ପ୍ରଥମ ସଂସ୍କରଣ ୨୦୧୯
4. ପସାୟତ ଚିତ୍ରସେନ, ଆଦିବାସୀ ମୌଖିକ ସାହିତ୍ୟ ପରଂପରା, (ସଂ) ଓଡ଼ିଶା ସାହିତ୍ୟ ଏକାଡେମୀ , ଭୁବନେଶ୍ୱର,ଦ୍ୱିତୀୟ ସଂସ୍କରଣ ୨୦୧୬
5. ମହାନ୍ତି ବଂଶୀଧର, ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ,ଫ୍ରେଣ୍ଡସ୍ କଟକ
6. ମହାନ୍ତି ବିଜୟଲକ୍ଷ୍ମୀ, ଭାଷାଭାବନା (ସଂ) ବିଦ୍ୟା ପ୍ରକାଶନୀ, ଭୁବନେଶ୍ୱର, ପ୍ରଥମ ସଂସ୍କରଣ,୨୦୦୮
7. ମହାପାତ୍ର ନଗେନ୍ଦ୍ର ନାଥ, ଉତ୍ତରପୂର୍ବ ଉପାନ୍ତ ଓଡ଼ିଶାର ଭାଷ ସାହିତ୍ୟ ଓ ସଂସ୍କୃତି, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ପ୍ରଥମ ସଂସ୍କରଣ, ୧୯୯୭
8. ମିଶ୍ର ସଚ୍ଚିଦାନନ୍ଦ, ଭାଷାତତ୍ତ୍ୱ ସମୀକ୍ଷା, ସ୍ୱାରସ୍ୱତ ପୁସ୍ତକ ଭଣ୍ଡାର,ସମ୍ବଲପୁର,ଦ୍ୱିତୀୟ ସଂସ୍କରଣ, ୧୯୮୯
9. ମିଶ୍ର,ନୃସିଂହପ୍ରସାଦ, ସାହୁ ଶୁକଦେବ, ଆଦିବାସୀ ସମାଜ ଓ ସଂସ୍କୃତି, ମନୋରମା ପବ୍ଲିଶର୍ସ, କଟକ, ଦ୍ୱିତୀୟ ସଂସ୍କରଣ,୨୦୧୬
10. ସାହୁ ବାସୁଦେବ, ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ, ଫ୍ରେଣ୍ଡସ୍, କଟକ, ଷଷ୍ଠ ସଂସ୍କରଣ,୨୦୧୦
11. ସାହୁ ବାସୁଦେବ, ପୃଥିବୀର ଭାଷା ପରିବାର ପରିଚୟ ଓ ପରିସର, ବିଦ୍ୟା ପ୍ରକାଶନ, କଟକ , ପ୍ରଥମ ସଂସ୍କରଣ,୨୦୦୧
12. ନାଏକ ରାଜକିଶୋର, ନାଏକ ଶରତ ଚନ୍ଦ୍ର, ବାଥୁଡି ଜାତିର ଅଜ୍ଞାତ ଅଧ୍ୟାୟ, ପ୍ରକାଶକ,  ବାଥୁଡି ସାଂସ୍କୃତିକ ସମାଜ, କେନ୍ଦୁଝର
13. ରବିନ୍ଦ୍ର ମୋହନ ସେନାପତି, ଓଡ଼ିଶାର ଆଦିବାସୀ, ବିଦ୍ୟାବାରତୀ,କଟକ ପ୍ରଥମ ସଂସ୍କରଣ ,୨୦୦୬